୰ ଭକ୍ତଦାସଙ୍କ କୃତ

# ମନବୋଧ ଚଉତିଶା

ପ୍ରକାଶକ - ଶ୍ରୀରାଧାରମଣ ପୁସ୍ତକାଳୟ

* ନୂତନ ମୁଦ୍ରଣ *



ପ୍ରାପ୍ତିସ୍ଥାନ :-

**ଶ୍ରୀରାଧାରମଣ - ପୁସ୍ତକାଳୟ**

ବାଲୁବଜାର, କଟକ ।

ପୋ: ଚାନ୍ଦନୀଚୌକ ।

ମୂଲ୍ୟ ଟ ୦ /୬ ଛଅ ପଇସା ମାତ୍ର

# ମନବୋଧ ଚଉତିଶା

କହଇ ମନ ଅରେ ମୋ ବୋଲ କର । କାଳ ଶ୍ରୀମୁଖ ବାରେ ଦେଖିବା ଭୁଲ ରେ । କେତେ ଦିନକୁ ମନ ଥାଉଛୁ ଥିର । କି ଘେନିଯିବୁ ତୋର ଛୁଟିଲେ ଘଟ ରେ ॥ ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି । ଖାଇଣ ଥିବେ ଶ୍ୱାନ ଶୃଗାଳ ଗୋଣ୍ଠି ରେ । ଖଟ ପଲଙ୍କେ ମନ ଶୋଇବ ଶୋଭା । ଖାଳ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ॥ ଗଲେଣି ତୋ ସଙ୍ଗରୁ ଯେତେକ ଜନ । ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ ରେ । ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ । ଗାଡ଼େ ମଜ୍ଜିଣ କେତେ ଧନ ଅର୍ଜିଲୁ ରେ ॥ ଘର ବୋଲି ଅର୍ଜିଲୁ ଯେତେ ପଦାର୍ଥ । ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ । ଘର ଘରଣୀ ଦେହ ଥିଲାଯାଏ ଥିବେ । ଘେନ ବନ୍ଧୁ କୁଟୁମ୍ବ ଶୂନ୍ୟ ହୋଇବେ ରେ ॥ ଉଦ୍ଧାର ହେବୁ ଯେବେ ଭବ ସାଗରୁ । ଉପାୟ କର ଏବେ ଭଜ ଶ୍ରୀଗୁରୁ ରେ । ଊଣା ହେଉଛୁ ଦିନୁ ଦିନୁ ଆୟୁଷ । ଅଜି ଏଣିକି ଅଛୁ କେତେ ବୟସ ରେ ॥ ଶଜ ପ୍ରତିମା ପ୍ରାୟ ଦିଶୁ ସୁନ୍ଦର । ଚର ଭିତରେ ଦେଖ କି ନାରଖାର ରେ । ଚର୍ମ ଢାଙ୍କିଛି ସିନା ଚଉ-ସପ୍ତକ । ଶଙ୍ଖ ତୁ ଦଅ ନୀଳଗିରିବାସୀଙ୍କି ରେ ॥ ଛାର ଦେହକୁ ମନ କରିଛୁ ସଜ । ଛନ୍ଦ କପଟ ଛାଡ଼ି ଗୋବିନ୍ଦ ଭଜ ରେ । ଛୁଟିବେ ନାହିଁ ତୋତେ ବୋଲିବେ ମଡ଼ା । ଛ' ଖଣ୍ଡି କାଠ ତୋତେ ହୋଇବ ଜୋଡ଼ା ରେ ॥ ଜମ ଯେ ନ ଜାଣଇ ବାଳୁତ ବୁଢ଼ା । ଜୀବକୁ ବୋଲି ମନେ କରିଛୁ ଅଢ଼ା ରେ । ଝଣେହେଁ ଏଥୁଁ

କେହି ନାହିଁ ଅମର । ଜଗନ୍ନାଥଙ୍କ ଭଜ ହେବୁ କଙ୍କାର ରେ । ଖୋଲ କନ୍ଥା ପାନ୍ଥୋଡ଼ା ପିନ୍ଧାକୁ ବସ୍ତ୍ର । ଖାଡ଼ ସଂସାରେ ମନ ନ ବୁଝି ପଶୁ ରେ । ଗୁଣ୍ଠି ପଡ଼ିଲେ ଉଠିପାରିବୁ ନାହିଁ । ଗଣ୍ଡୋଳ ପଙ୍କ ବୃକ୍ଷେ ଲଗିଛୁ କାହିଁ ରେ । ଘଣ୍ଟ ଘଂସେ ଥିର ନୋହୁ ନା ମନ । ନିଦ୍ରାରେ ଦେଖୁଅଛୁ ଯଥା ସ୍ୱପନ ରେ । ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା । ନାମ ମାତ୍ର ଅଛଇ ପଥକୁ ସଖା ରେ । ଛାଣ କବଳୁ ମନ ସବୁ ମୋହର । ଝଳି ପଡ଼ିଲେ କେହି ନୁହେ ତାହାର ରେ । ଝେସ ଭିତରେ ଯେମନ୍ତେ ଅପୂର୍ବ ନାସ୍ତି । ଟୋପ ଭଣ୍ଡିର ଅଛୁ ତୋ ଦେହେ ପୂରି ରେ । ଠିକେ ମୁଁ କହୁଅଛୁ କର ମୋ କଥା । ଠିକେ ତୋ ଦେହେ ଅଛି ଶୂନ୍ୟଦେବତା ରେ । ଠିକ ଯିବୁଟି ଠିକମୃତ୍ୟୁ ପଡ଼ିଲେ । ଠିକେ ଗୁରୁଙ୍କ ସେବା କର ତୁ ଭଲେ ରେ । ଡାକ କହୁଛୁ ମନ ଭଜ ଗୋବିନ୍ଦ । ଡର କଙ୍କାଳ ଯାଉ ତୋହର ହୃଦ ରେ । ଣେବଂଶାନ୍ତ୍ର ଶ୍ରବଣ ଭକ୍ତ ତାଙ୍କୁ । ତଙ୍ଗା ଯେମନ୍ତେ ଜଳରେ ଗୁହାଁ ପଛକୁ ରେ । ଢୋଲ ଯେସନେ ଠାଉଁ ଠାଉଁ ବାଜଇ । ଠାଳେ ତହିଁ ଭିତରେ କିଛିହିଁ ନାହିଁରେ । ଥାକି ରହିଛୁ ଦେହ ସବୁଟି ତୁଚ୍ଛ । ଥଳ ପଡ଼ିଲେ ସବୁ ହେବଟି ମିଛ ରେ ॥ ଏଣେ ତୁ ଦେଇଥିଲେ ତେଣେ ପାଇବୁ । ଅଣ-ଥୃତ୍ତବେଳେ କ ସେନାଯିବୁ ରେ । ଅଣନିଃଶ୍ୱାସୀ ହୋଇ ରହିବୁ ଦିନେ । ଅନେକ ଦୁଃଖ ଦେବେ ଯମ ଭୁବନେ ରେ । ତୁ ଯେବେ ବୋଲୁ ମୋର ଅର୍ଜିଲ ଧନ । ତୋ ଦେହ ନୁହ ତୋର ଦେଖ ଏମାନ ରେ । ତୋହର ସଙ୍ଗ ମନ ଗଲେଣି କେତେ । ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ । ଥିଲେ ଏ ସଂସାରରେ ଯେତେ ନୃପତି । ଥିବୁକର କେ ଭୋଗ କଲେ ଏ ପୃଥିବୀ ରେ । ଥୋଇଲା ଧନ ତୋର ଖଣ୍ଡି ଖାଇବେ । ଥାନେ ତୋହର ଘର କର ରହିବେ ରେ । ଦେହେ ପୂରିଛି ତୋର ଅଶେଷ ରୋଗ ।

ଝିନା ପୁତ୍ରଙ୍କ ସିନା ଏ ସୁଖଭୋଗ ରେ । ଦଣ୍ଡେହେଁ କେହୁ ତୋତେ ରଖିବେ ନାହିଁ । ଦଣ୍ଡୁ ଯେ ଥିବେ ଯମ ନଗର ନେଇ ରେ । ଧର୍ମ ଅଧର୍ମ କଥା ନ ଜାଣୁ ତୁହି । ଯେଉଁ ହେତୁକୁ ଧନ ଅର୍ଜିବା ପାଇଁ ରେ । ଧୋକା ରଖିଲେ ଧନା ପିଠିବ ନାହିଁ । ଧର୍ମରେ ଅଢଯାଉ ବହୁଜନ୍ମ ମନ୍ଦି ରେ । ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ । ନରକେ ପଡ଼ି କଷ୍ଟେ ଦୁଃଖ ସହିବୁ ରେ । ନିମିଷେ ମାତ୍ର ମୁଖେ ନ ବୋଲୁ ହରି । ନାଶ ହେଉଛୁ କିପାଁ ଅଛୁ ଅଘୋର ରେ । ପାହିଲେ ନିଶି ଯେସନେ ରବି ଉଦୟ । ପଦ୍ମଲୋଚନ ସବୁ ଦେହେ ଉଦୟ ରେ । ପ୍ରଭୁଙ୍କୁ ଅଶେଷ କର ତରିବୁ ଯେବେ । ପାଦପଦ୍ମରେ ରଖ ଦୃଢ଼ ତୁ ଏବେ ରେ । ଫୁଲ ଯେସନେ ଫୁଲେ ଫୁଲେ ବିହରେ । ଫୁଲ ସମୀରେ ଅଛି ନ ଦିଶେ ଉରେ ରେ । ଫଳ ସଂସାରେ ଲଭ ହରି ଭଜନ । ପ୍ରାଣ ଗଲାକୁ କିପା କରୁଛୁ ଯତନ ରେ । ବେଣ୍ଟକୁ ବେଳ ତୋତେ କହୁଛୁ ମୁହିଁ । ବାନ୍ଧଣ ନେବ ଯମ କି ଦୁଃଖ ଦେଇ ରେ । ଭକଲେ ବାନ୍ଧୁଥିବ ଅକୁଣ୍ଠ ହୋଇ । ବୈକୁଣ୍ଠ ଅଶେଷକର ଭଜ ଗୋସାଇଁ ରେ । ଭେଳା ବୁଡ଼ିବ ହେଲା କଲେ କହୁଛୁ । ଭଙ୍ଗା ନାବରେ କେବା ସିନ୍ଧୁ ତରିଛି ରେ । ହରିକୁ ନିକଟ ସେ ଅଛିବେ ଦୂର । ଭକତ ଦାସ ବୋଲେ ଜୀବନ ସ୍ଥିର ରେ । ମିଥ୍ୟା ମାୟା ସଂସାର ନୁହେ କାହାର । ମଲ୍ଲ ବୋଲିଣ ଧନେ ପଡ଼ିବ ହୁର ରେ । ମଣ୍ଡୀ ଭିତରେ କେହି ରହିବ ନାହିଁ । ମଲ ବୋଲି କାନ୍ଦନ୍ତୁ ମରିବୁ ତୁହି ରେ । ଜନମ ହେଲେ ପ୍ରାଣୀ ଅବଶ୍ୟ ମର । ଯଶ ରଖିବୁ ଯେବେ ଭଜ ଶ୍ରୀହରି ରେ । ଯମ ଯେ ବାନ୍ଧିନେବ ହେବୁ ମେଳଣି । ଜଗନ୍ନାଥ ମହିମା ଏଣିକି ଅଣି ରେ । ବଙ୍ଗ ପସର ସିନା ଭବସାଗର । ରଙ୍ଗ ଭିତରେ ଅଛୁ କି ନାରଖାର ରେ । ରୂପ ପ୍ରତିମାକୁ ତୁ ପରତେ ନ ଯା । ରହିବେ

ନାହିଁ କେହୁ ରଜା ପରଜା ରେ ॥ ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନିତ । ଲୋଭକର ଅର୍ଜିଲୁ ଧନ ସମ୍ପତ୍ତି ରେ । ଲୋଭଟି ସବୁ ନାଶ କରଇ ମନ । ଲୋଡ଼ିଲେ ନ ପାଇବୁ ଅଙ୍ଗ ଜୀବନ ରେ । ଲୋଟର୍ଥେ ବଢ଼ୁଅଛୁ ଦୁର୍ଲ୍ଲଭ ଦେହ । ଲୋଷଯୁ ଲୋପେ ଅଙ୍ଗ ନ ବଳା ସ୍ନେହରେ । ବୁଡ଼ିଯିବୁଟି ମୂଳ ଲାଭ ସବୁ । ବେଳହୁଁ ଅଶୋକର ଭଜ ମାଧବ ରେ । ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ । ସରିଲେ ନ ପାଇବୁ ଅଙ୍ଗ ଜୀବନ ରେ । ଶ୍ରୀକୃଷ୍ଣ ନାମଗୋଟି କର ଭଜନ । ଶ୍ରୀକୃଷ୍ଣ ପାଦପଦ୍ମେ କର ତୁ ଧ୍ୟାନ ରେ । ସନ୍ତୋଷ ଚିତ୍ତେ ତୁହି ହରିଙ୍କୁ ଭଜ । ସଂସାରେ ପଡ଼ି ଅବୁ ନ ପାଅ ଲାଜ ରେ । ସବୁଟି ମିଛ ହରିନାମଟି ସତ । ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଚିତ୍ତ ରେ । ସତ୍ୟ ମଣୁଛୁ ତୁହି ଭବ-ସାଗର । ସତ ଯାଉଛୁ ପରମାୟୁ ତୋହର ରେ । ସନ୍ତୋଷ ହୋଇ ଦୃଢେ ଭଜ ଶ୍ରୀହରି । ଶୋକସାଗରୁ ଯେବେ ହୋଇବୁ ପାରି ରେ । ହୁଡ଼ିଲେ ଯେତେ ଜନ ହରି ନାମକୁ । ସ୍ଥାନଗତକୁ ଗଲେ ବୁଡ଼ି ତଳକୁ ରେ । ହଜିଲେ ଦେହ ଅଙ୍ଗ ପାଇବୁ ନାହିଁ । ହାଟ ବସାଇଥିବେ ତୋ ଦେହପାଇଁ ରେ । କ୍ଷୟ ଦୁର୍ଲ୍ଲଭ ଦେହ ହୁଏ ଅଯୂତ । କ୍ଷୟ ନ ଯିବ ନାମ ହୃଦରେ ଦେଖ ରେ । ସ୍ଥିର ଦେହକୁ ମନ ନ ଯା ବିଶ୍ୱାସ ସ୍ଥିର ବୁଦ୍ଧି କହେ ଭକତ ଦାସ ଯେ ।

ସ ମା ପ୍ତ

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ରଥବନ୍ଧୁ, ଶ୍ରୀରାଧାରମଣ ପ୍ରେସ,
କଟକ—୧୯୫୯

